# ଦଶହରା ଭେଟି



ଶ୍ରୀ ଘନଶ୍ୟାମ ମହାନ୍ତି

# ଦଶହରା ଭେଟି



( ରାଧା ଧର ସଖୀ କର—ବୃନ୍ଦେ )

ଆଜ ଦଶହରା ପୂଜା,   ଘରେ ଘରେ ବାଜେ ମା ଦଶଭୂଜା ହେ,
ପାଳ ପ୍ରଜା ଖାଇ ବଳଭୋଜା । ମହିମା ହେ

ମହିଷାସୁରମର୍ଦ୍ଦିନୀ,   ପ୍ରଣମେ ଚରଣେ ସିଂହବାହିନୀ ମା
ଦେବେ ଖଡ଼ଗେ ଭଗାସ୍ୱ ହାଣି । ମହିମା ହେ

ତେଲଙ୍ଗୀ ବାଇଦ ବାଜେ,   ଦଶ'ରା ବେଦୀରେ ସ୍ଥାମ୍ଭୁ ମୋ ବଟକ ହେ,
ଘରକୋଣେ ମୁଁ ଲୁଚଇଁ ଲାଜେ । ମହିମା ହେ

ନାହିଁ ମୋ କାଣିକଉଡ଼ି,   କଲମଟି ମୋର ଅନ୍ଧ-ଲଉଡ଼ି ହେ,
ନେଇ କି ଭେଟି ଯିବି ଦଉଡ଼ି । ...

ମନ ହେଲା ଛୁଟିପିଟି,   ଦୂରେ ଥାଇ ଦେଲି ଦଶ'ରା ଭେଟି ହେ,
ଡରେଁ, କାଳେ ନ ରହିବ ତୁଟି । ...

ରଖିବ ଯେବେ ଏ ମୁଣ୍ଡ,   ତୁମ ଗୁଣ ବାହୁନବ ମୋ ତୁଣ୍ଡ ହେ,
ହେବ ରାମାୟଣ ସାତକାଣ୍ଡ । ...

ରାତି ରାତି ଯିବ ପାହି,   ଗୁଣ ବାହୁନା ମୋ ସରିବ ନାହିଁ ହେ,
ଖାଲି ଠିକେ ଠିକେ ଯିବ କହି । ...

ଭୁମର ଚମକ ଖାଇ,   ଗୁମର ଟାଳିବ ଭୟ ମୋ ନାହିଁ ହେ,
କେବେ ଚମକଦାରାମ କୋହି । ...

ଥରେ ନୁହେଁ ଶହେ ଥର,   କ୍ଷମା ମାଗେ ଝୁମୁ ଯୋଡ଼ହସ୍ତ କରି ହେ,
ଦୂରୁଁ କରୁଛୁ କୋଟି ଜୁହାର, ମଣିମା ହେ

ଦନ୍ତରେ ଛରଣ ଧରି   କାତରେ ଅନ୍ତରେ ଭକତି ଭରି ହେ,
କ୍ଷମାଭିକ୍ଷା ମାଗେ ଥରି ଥରି । ...

ଦେଖ ବା ନ ଦେଖ କ୍ଷମା,   ଗୁହାରି ଶୁଣିମା ହେଉ ମଣିମା ହେ,
ପାଦେ ଜୁହାର ମୋ ରହୁ ଜମା । ...

ପାଟେଶ୍ୱରୀ ଛୋଟେଶ୍ୱରୀ,   ଦୋହିଙ୍କ ଗୋଟିଏ କନ୍ଦର୍ପଖଣି ହେ,
କ୍ଷମା ଦେବେ ପ୍ରଜାପୁଅ ଜାଣି । ...

ଯୁବରାଜ ଯୁବରାଣୀ,   ଦୁହିଙ୍କ ରସିକା ମଙ୍କଡ଼ମଣି ହେ,
ତାଙ୍କ ପାଦେ ମୋ କ୍ଷମା ମାଗୁଣି । ...

ଲବଣୀ ପିତୁଳା ସରି   ଚହଲ ଅଛିଲା ଚହଟଟୋକୀ ହେ,
ହଜଜେମା ଦେବେ କ୍ଷମା କରି । ...

କୋଟି କାଳ ଟୋକୀ ଦାସୀ,   ସକଳ ତୀର୍ଥ ଯା ଚରଣବାସୀ ହେ,
ମୋତେ କ୍ଷମା ଦେବେ ହସି ହସି । ...

ଦୈବବିଧାତା ଦିଅନ,   ହତେ କି ସେ ରାଜକୁଳ ବନ୍ଦନ ହେ,
ତାଙ୍କ କ୍ଷମାଦାନେ ମୋ ଧିଆନ । ...

ମନଜର ମ୍ୟାନେଜର   କଲମେ ମାରନ୍ତି କରମଟାର ହେ,
ତାଙ୍କୁ କ୍ଷମା ମାଗେ ଶହେ ଥର । ...

ଝୁମୁଙ୍କ ଅସୁଲକାରୀ   ତହସିଲଦାର ଜବର ଭାରୀ ହେ,
ସପନରେ ଦେଖେଁ ଯାଙ୍କ ଜାରି, ...

ଜୀଅନ୍ତା-ମଲା ଅମଲା,   ଲେମ ଗୋଟିକେ ଯା' କୋଟି ମାମଲା ହେ,
ପ୍ରଜାପୁଅ ଯାଙ୍କ ଶଳା, ଶାଳୀ, ...

ପାଖେ ରହି କାନେ କହି   ରକତ ଶୋଷନ୍ତି ଡାଆଁସ ନୋହି ହେ,
ତାଙ୍କୁ କ୍ଷମା ମାଗେ ଦୂରେ ରହି । ...

ହକସ୍ତା ଗୁମାସ୍ତା ଦଳ,   ଲାଞ୍ଚ ନ ପାନ୍ତୁଁ ଯେ ହୁଅରେ ଠୁଳ ହେ,
କ୍ଷମା ଦେବେ ଜାଣି ଭେଲ କାଳ । ...

କଟୁଆଳ ଦଣ୍ଡ ଅସି, ଦଣ୍ଡକେ ଦେବେ ଯେ ଜୀଅନ୍ତା ଗ୍ରାସି ହେ,
କ୍ଷମା ଦେବେ ସେ, ନୁହେଁ ମୁଁ ଦୋଷୀ ।...

ଗୁଞ୍ଜଫୁଲ୍ ବଉଟପତ୍ର- ଦଳ ଯେ ଭଅନ୍ତି ଦମନ ପାନ୍ତ ହେ,
କ୍ଷମା ଦେବେ ସେ ନୋହୁ ଅଭୂଲ୍ତ ।...

କହୁଛୁ କର ଶପଥ, କନ୍ତୁ ନ ରଖିବ ଛଳ ଗୁପତ ହେ,
ଫଳ ହେଉ ବା ନୋହୁ ପ୍ରାପତ. ...

ତୁଳି କାଳଅ ସାଅନ୍ତ ବାଲ ଗୃଲ ଗୃହିଁ ଶ୍ରୀ ଲୋକନାଥ ହେ,
ଯାହା କହୁବ ନସାଠ ସତ ।...

ସମଚଣ୍ଡୀ ହରଚଣ୍ଡୀ ତୁଳି କାହିଁ, ଦେବେ ଜ୍ଞାନ ଖଣ୍ଡି ହେ,
ହଜ ସୁନା କେ କରଇ ବେଣ୍ଡି ? ...

ମୁହିଁ ପାଛ ପଡ଼ୁ ଲଙ୍ଗା, ସାନ ଅନ ସିବା ଚନ୍ଦ୍ରସ୍ବଗା ହେ,
ତାଙ୍କୁ ତୁଳି କହୁବ ଅଗ୍ରଗା ।...

ସାକ୍ଷୀଗୋପାଳଙ୍କୁ ସାକ୍ଷୀ କର କହୁବ ଯା ଦେଖିଛୁ ଆଖି ହେ,
ପେଟେ କପଟ ଛଳ ନ ରଖି ।...

କାଉପଦରରେ ଗ୍ରୁମୁ, ଯୀର ତୁଳି ସତ କହୁ ପାରବ ମୁଁ,
ପ୍ରଜାପୁଅ ଭୂମ ପୁଅ ମାମୁଁ ।...

ଏକାମ୍ରକାନନେ ଯାଇ, ତୁଳି ଲଙ୍ଗରାଜ ପାରବ କହୁ ହେ,
ଯାହା ଦଏ ମୋ ମରମ ଦହୁ ।...

ପଟିଅ ଶିଖରଚଣ୍ଡୀ ତୁଳି କାହ ଗ୍ରୁମୁ, କେଉଁଛ ଚଣ୍ଡି ହେ,
ବେଳେ କେଲା ପର ଦଅ ଭଣ୍ଡି ।...

ସାତପୁରୁଷର ବନ୍ଧ ଛଙ୍ଗି ପଦା ହେଲା, ରହୁଲ ଅନ୍ଧ ହେ,
ଚଷାପୁଅଠାରେ କଲ ଛନ୍ଦ ।...

ଜମି ହେଲା ବାଲିଚର, ନ ବାଜଲ୍ ତହିଁ ଲଙ୍ଗଳ ଗାର ହେ,
ଖାଲ ବାଲିରେ ଫସଲ କାର ? ...

ଆଇନରେ ଅଛୁ ବାଡ଼, ବାଲିଚର ଜମି ଖଜଣାଗୁଡ଼ ହେ,
କର ନେଲ ମାର ବଣ୍ଟାମାଡ଼ ।...

ଠକିଦେଲ ଦେଖୁଁ ଦେଖୁଁ, ଖସିଯିବା ପାଇଁ ଅଇନମୁଖୁଁ ହେ,
କାଣଚଣ୍ଡିକ ବୋଇଲ 'ଆଖୁ' ।...

କା ଜମି ନିଲାମ ଡାକ 'କର କଳ୍ପଇଲ ଘର କୋରଣ ହେ,
ବୋଦ୍ଧ ନେଲ କଂସାଲୋଟାଟକ ।...

ଭୋକିଲା ଶୁଖିଲା ମୁହଁ ପିଲାଙ୍କର ଦେଖି ଉଠିଲା କୋହ ହେ,
ଘର ପର କଲା ଚଷାପୁଅ ।...

କଲିକତା, କାଳିମାଟି କଲଘରେ ସଞ୍ଜ ସକାଳ ଖଟି ହେ,
ତୁମ ଲାଗି ସାଇତିଲା ମୁଠି ।...

ଦର ଉପବାସେ ରହି, ଖଜଣା ଗଣିଲା ତୁଟର ସେ ଥାଇ ହେ,
ଝିଅ ମାଇପ ଇଜ୍ଜତ ପାଇଁ ।...

ଲାଭରେ ଋଣ ହଅର, ଲଠା କାଠ କଣ୍ଢା ଜୀବିକା ଯାର ହେ,
ଦେଲ ଆହାର ମୁହେଁ ପାହାର ।...

ନାହିଁ ଯାର ଚିଙ୍କି ଚକ୍ର, ପରବା କାଟିବା ପାଇଁ ପନକ ହେ,
ଝୁଲେ ଶିକାରେ ପଖାଳ ଠେକ, ...

ତା ଘରେ ଫୁଲସଦଳ ପୂରାଇ କହିଲ କମର ବଳ ହେ,
ମନ ମାନିଲା ତ ପାଇ ଫଳ ? ...

ଲାଗେ ମତେ କାଲି ପରୁ, ପଥରୁଣୀ ଦେଲେ ମହତ ସାରୁ ହେ,
ଯମ ଦୁଆରୁ ଆସିଛ ଫେରୁ ।...

ନ ଡର ଗୁଳି ବନ୍ଧୁକ, ନ ହଟି ରଖିଲା ଆପଣା ଠେକ ସେ,
ଧିକ ତୁମର ବୁଦ୍ଧି ବିବେକ ।...

ଶୁଣିଲ ନାହିଁ ନରେଶ, ଦନେ ଅଧେ ନୁହେଁ ବାର ବରଷ ହେ,
ହେଲା କେତେ ହନ୍ତସନ୍ତ ଶେଷ ।

ତେଣୁ ନଇ କାଠଯୋଡ଼ି, ନାଲିଆପତାକା ଆସିଲା ଉଡ଼ି ହେ,
ଦେଖି ହଂସା ତୁମ ଗଲା ଉଡ଼ି ।...

ବାଇଶାଖ ଖରବେଳେ ତତା ବାଲି, ନାଲି ପତାକା ତଳେ ହେ,
ରୁଣ୍ଡ ହେଲେ କୃଷୀ ଦଳେ ଦଳେ ।...

ବାନ୍ଧକୁ ମିଶାଇ ବାନ୍ଧ   ଚାଷୀ ମଜୁରଅ ବାନ୍ଧିଲୁଁ ବନ୍ଧ ହେ,
ଜଣାଗଲା ତୁମ ଭାଗ୍ୟ ମନ୍ଦ । ...

ଭାବିଥିଲ ପରା ରଜା,   'ଉଷୁନା ଧାନ କି ହୋଇବ ଗଜା ହେ,
ହୀନବଳ ତ ଚାଷୀ ପରଜା' । ...

ଲଟିଲ ମନେ ଦରବ,   ମେଳ ଦେଖି ଶୁଖିଗଲା ହଲକ ହେ,
କମ୍ପିଉଠିଲା ସାରା ମୁଲକ । ...

ଆଖିରେ ପକାଇ ଧୂଳି   ବାହାଦୁରୀ ନେବ ମନରେ ଭାଳି ହେ,
ତୁଚ୍ଛା ଭିଆଉଛ ଏବେ କାଳି । ..

ଭାବିଛ ଦଲାଲ ଦଳ   ଲଗାଇ ଭାଙ୍ଗିବ ଆମର ମେଳ ହେ,
ହେଉ ଥରେ କଷାକଷି ବଳ । ...

ପାଞ୍ଚୁଛ ପତ୍ର ପତ୍ରିକା-   ବଳେ ଉଡ଼ାଇବ ଯଶ-ପତାକା ହେ,
ବୁଝନଅ କି ତୁମପର ବୋକା ? ...

ଗଲାଣି ସେ ବେଳ ଗଡ଼ି,   ସାରା ଭାରତରେ ପଡ଼ିଛି ହୁରି ହେ,
'ବାଟେ ବାଟେ ଯା ଧର ଦା' ବାଡ଼ି' । ...

ଜାଣିଥା ଆମ ଏ ମେଣ୍ଟ   ତଡ଼ିବ ଶାସକ, ଶୋଷକ ଝଣ୍ଟ ହେ,
ଭାଙ୍ଗିଯିବ ତୁମ ଦମ୍ଭ, ଅଣ୍ଟ । ...

ଚାଲ ଦଳେ ପୂର୍ବଭାଗେ,   ଅଖଣ୍ଡଳମଣି ମହିମା ଜାଗେ ହେ,
ତାଙ୍କୁ ସରୋଜେନ୍ଦ୍ର ଛୁଇଁବ ଆଗେ । ...

ଶୈଳେନ୍ଦ୍ର କୈଳାସ ଶିଖେ,   ଚନ୍ଦ୍ରଶେଖରଙ୍କୁ ଛୁଇଁବ ସୁଖେ ହେ,
ମିଛ ସଇଠୁ କାହିଁ ମୋ ମୁଖେ । ...

ମହାବିନାୟକ ମୂର୍ତ୍ତି   ସେବ ରବୀନ୍ଦ୍ର ନବୀନ୍ଦ୍ର ହୁଅନ୍ତୁ ହେ,
ତାଙ୍କୁ ଛୁଇଁ କି ମିଛ କହନ୍ତୁ ! ...

ବାଙ୍କି ଚର୍ଚ୍ଚିକାଙ୍କୁ ଛୁଇଁ,   ଯାଜପୁରେ ମାଆ ବିରଜା ଛୁଇଁ ହେ,
ସାକ୍ଷୀ ରଖି ମାଆ ସମଲେଇ । ...

ଛୁଇଁ ଝଙ୍କଡ଼ ଶାରଳା,   କାକଟପୁରରେ ମାଆ ମଙ୍ଗଳା ହେ,
ଛୁଇଁ କହିବ ପୁଣି ବିମଳା । ...

ବାଣପୁର ଭଗବତୀ   ଛୁଇଁ ଗାଇବ ମୁଁ ତୁମ ଆରତି ହେ,
ଗୃହିଁ କଠକରଣ୍ଡୀ ମୂରତି । ...

ଭୁଷଣ୍ଡପୁରରେ ମାଆ   ଉଗ୍ରତାରା ହେବେ ଜାଗ୍ରବସାହା ହେ,
ସତ କହିଁ ଧର ତାଙ୍କ ନାଆଁ । ...

କାଟେଶ୍ୱର କୁଞ୍ଜବାସୀ   ପ୍ରଭୁ ଚଣ୍ଡେଶ୍ୱର ଦେଉଳେ ପଶି ହେ,
ସତ କହ ନହେଲେ ହେବ ଦୋଷୀ ।...

ଚଲ୍କାରେ କାଳଜାଈ,   ଅଟକେ ଯେ ରଖେ ନାଉରୀ ଭାଇ ହେ,
ସତ କହିବ ମୁଁ ତାଙ୍କୁ ଛୁଇଁ । ...

ଭଦ୍ରକେ ଭଦ୍ରକକାଳୀ   ଗୃହିଁ କହିବ ମୁଁ ଛଳେ ନ ଭାଳ ହେ,
ମୁଣ୍ଡ ରଖିବେ ସେ ମୁଣ୍ଡମାଳୀ । ...

ଏ ଧରମ ଅଦାଲତ,   କଛୁ ନ ଲୁଗାଇ କହିବ ସତ ହେ,
ଦମ୍ଭେ ଦେଇ ମୋ ଗ୍ରନ୍ଥରେ ହାତ । ...

ସ୍ୱୟଂ ଧର୍ମ ଅବତାର,   ପ୍ରମାଣ ପାଖେ ଯେ ମାନନ୍ତି ହାର ହେ,
ଛୁଇଁ କହିବ ତାଙ୍କ ପୟର । ...

ଜେଲଖାନା ପରେ ଆଖି   ରଖି ମୁଁ କଦମରସୁଲେ ସାକ୍ଷୀ ହେ,
କହିଁ, ପ୍ରଜା କେଡ଼େ ନଷ୍ଟମାଖି । ..

ତୁମେ ମହାବଳୁଁ ବଳ,   ଶ୍ରୀତୁମ୍ଭ, ମୁଁ ତୁମ ମୁହଁରେ ହେଳ ହେ,
ନର ହୋଇ ଖାଅ ନରବଳ । ...

ତୁମ ବାକ୍ୟ ଅତ୍ୟାଚାର   କାଳବକ୍ଷେ ହେଲା ଅଙ୍କୁଶ ଟାର ହେ,
ଝରେ ଲୁହ ଲୁହେଁ ଲହୁଧାର । ...

ବଣକର, ଛଣକର,   ନଆଁକର ପୁଣି ସୁନଆଁ କର ହେ,
ଖାଉପୋଡ଼ା, ପାଠପଢ଼ା କର । ...

ମନ୍ଦମହମରେ କର,   ବେଗ ଭେଟି ଦେଉଁ ଔଷଦ କର ହେ,
ତୁମ କୃଷ୍ଣ ସେବେ ଡାକତର । ...

ଫାଳଗଦା, ଖତଗଦା,   ବାଡ଼ି ବଗାଯୁତ, ଗୋବର ପଦା ହେ,
ସବୁଠାରେ କରଟୋଙ୍କ ଲଦା । ...

ଦେଇ ଏତେମତେ କର,   ନଇ ଖାଉଁ କେତେ କେତ ପାହାର ହେ,
ଗଧ ଝୋପି କା ମୁଣ୍ଡେ ମୁଅର । ...

ଅଣ୍ଟମଡ଼ା, କାନମୋଡ଼ା,   ରଗଡ଼ା ପଥରେ ନାକ ଘଷଡ଼ା ହେ,
କାର ପିଠିରେ ବଧା ଗୃପୁଡ଼ା । ...

ଖଇ ପୁଡା ମୁଣ୍ଡପଟା   ଖପରେ କାହାକୁ ବସାଇ ଉଠା ହେ,
କାର ଦୁଆରେ ଖପର ଝୁଣ୍ଟା । ...

ନାଗର କାହାର ଗଳେ   ଗଳାଇ ବୁଲାଅ ଗାଆଁ ଗହଳେ ହେ,
କାହିଁ କାହା କଞ୍ଚା ମାଂସ ପୁଳେ । ...

କାର ସାତବେଣି କାଟି,   କାହାକୁ ପାଦରେ ଦେଇ ଚକଟି ହେ,
ଦେଲ କାହାକୁ ଜୀଅନ୍ତା ମାଟି । ...

ଗଣ୍ଡେ ଖାଇ ଖଣ୍ଡେ ପିନ୍ଧି   ସୁଖେ ଯେ ରହିଥିଲା ହେଲ ତା ବାଦୀ ହେ,
ଜଣ୍ଡି ଦେଲ ନଅ ଦାଉ ସାଧି । ...

ଟେଣ୍ଟା ନାଏକ କହଣ   ଶୁଣିଲେ ତରଳ ନିବ ପାଷାଣ ହେ,
ଉଡ଼େ ତୁମର ଦନା-ଦଣାଣ । ...

ଦୁଃଖିନୀ ଗଭଣୀ ନାରୀ   ପେଟରେ ନଠରେ ଗୋଇଠା ମାରୁ ହେ,
କେତେ ମରାଇଲ ଶିଶୁ, ନାରୀ । ...

ପର ଅଗେ ସତୀ ନାରୀ,   ପାଶ୍ୱଁରେ କର ଅଦେଶ ଜାରୁ ହେ,
ନେଲ ମହତ ଉଲଗ୍ନ କରୁ । ...

ପିତାମାତା ଅଗେ ଝିଅ   ଦଣ୍ଡ୍ରୁଅଛି ହାତେ ଯେ ଦଣ୍ଡ ଦଅ ହେ,
ଭେଟିବାକୁ ନା ଅଟଙ୍କା ଦେନ । ...

ରକତ ଜଠର ଡାଇ,   ନର ହୋଇ ଧର ପଶୁ-ପ୍ରକୃତ ହେ,
କେତେ ସହିବ ଏ ବସୁମତୀ ! ...

କେତେ ସହିବୁଁ କହଣ,   ଦୋରେ ଦବେ ତୁକାଣ ଏମାନ ନେ,
କଲେ ମାନହାନ ହୁଏ ଜାଣ । ..

ତୁମର ମାନ ମହତ   ଥିଲା କେଉଁ କାଳେ ସତ କହଁତ ହେ,
ସବୁ ହାତେ ହାତେ ସାଦନ୍ତ ତ । ...

ଷୀରଚୋର ଗୋପୀନାଥ   ଅଡ଼କୁ ବଢ଼ାଇ କହୁଛ ହାତ ହେ,
ନାହିଁ ନ ଥିଲା ତୁମ ମହତ । ···

ତୁମେ ଏଡ଼େକ ନିର୍ଲଜ୍ଜ,   ଥୋବରା ମୁହଁକୁ ନାହିଁ କି ଲଜ ହେ,
ମୋତେ କ୍ଷମାକର ମହାରାଜ । ···

ଯା ବାପ ଗୋସାପ ଅଜା,   ସାତପୁରୁଷରେ ନଥିଲେ ରଜା ହେ,
ଖୋଜେ ଚାଖିବ ସ୍ୱାଧୀନ ମଜା । ···

ବାମନ ଚାନ୍ଦ କି ଛୁଏଁ,   ହାତରେ କେ କରେ ବାଦଲ ବନ୍ଧ ହେ
ଚୋର ଜମିଦାରୀ ମୋହେ ଅନ୍ଧ । ···

ଜମିଦାରୀ ଦଣ୍ଡେ ଖଣ୍ଡେ,   ରଜା ବୋଲି ତୁମ ଚୋରଛଟା କୁଣ୍ଡେ ହେ,
ବଡ଼ ବଦପରେ ଚାଲ ଦାଣ୍ଡେ । ···

ପାଟିଆଲା, ଅଲୱାର,   ମହୀସୁର କବା ଭରତପୁର ହେ,
ଭଲ ପା'ନ୍ତୁ ଯେବେ ଅଧିକାର । ···

ମଣିଷ ଗୁଛରେ ଚଢ଼ି   ବାଟେ ଚାଲୁଥାନ୍ତି ଜଣକୁ ମୋଡ଼ ହେ,
ଯାନ୍ତି ବଡ଼ଲୋକପଣ ପୋଡ଼ି । ···

ନୀଚ ଯେବେ ଅଧିକାର   ପାଏ, ସେ ଶିବଙ୍କୁ ବୁହାଏ ଭାର ହେ,
ତେଣୁ ହେଲ ଜମିଦାର ଚୋର । ···

ପରଜା ରକତଚୁଷ,   ଭୁଞ୍ଜାଇଛି ସଦା ରାଜସମ୍ପତ୍ତି ହେ,
ପୋଡୁ ପରଜା-ଦଳନ-ନୀତି । ···

ପରଜା ପାଳିବା ପାଇଁ   ରାଜଛତ୍ର ଶିରେ ଦେଇଛୁ ବନ୍ଧ ହେ,
ନୁହେ ପରଜା-ଗଞ୍ଜଣା ପାଇଁ । ···

ଗୋଟି ଗୋଟି ପ୍ରଜା କୋଟି   ମୁଣ୍ଡ ଖାଲ ତୁଣ୍ଡେ ମାରନ୍ତି ଖଟି ହେ,
ଦୁଃଖେ ବସୁଧା ଯାଉଛି ଫାଟି । ···

ତୁମର ଅପକରମ   ସହି ନ ପାରିଲା ଆଉ ଧରମ ହେ,
ଏବେ ଭୁଞ୍ଜିବ କଲା କରମ । ···

ରାଜା-ଜମିଦାର, ଚାହ   ଛାଡ଼ଦଅ ଯେବେ ଦଶେ ସୁବୁଦ୍ଧି ହେ,
ଛାଡ଼ଦେବୁଁ କି ଦାଉ ନ ସାଧି ! ···

ଭାବଛ ଷଢପୂରଣ   ନେବ, ହେବ ତୁମ ଇଚ୍ଛାପୂରଣ ହେ,
ଖୋଜ ମରଣ ବେଳେ ଶରଣ । ••

ତୁମର ଭାଇ ବନ୍ଧୁଗଣ,   ଛଡଗ ଗଡ଼ରେ ମିଶା ଚବଶା ହେ,
ତାଙ୍କୁ ପାରେ ସାର୍ବଭୌମ ଜଣା । ••

ପରଦେଶୀ ଗୋରା ପାଦ   ଗୃହି ନ ଗୁଡ଼େ କ ପାଠି ସୁଅଦ ହେ,
ଜାଡ-ସରକାରେ ସାଧ ବାଦ । •••

ସବୁର ଗୁଣ ଗାଇମା,   ଏକୁଁ ବଳିଆନ ଅପକାରମା ହେ,
ଠିକ କହବ ହେଉ ଶୁଣିମା । ••

ଖଣ୍ଡପଡ଼ା ଗଡ଼େ ଯାଇଁ   ନୀଳମାଧବଙ୍କୁ କହବ ତୁଇଁ ହେ,
ତହିଁ ବଳାତ୍କାର ସୀମା ନାହିଁ । •••

ରଣପୁରେ ମଣିନାଗ,   ଯା ପ୍ରସାଦେ ଛେଳି ପାଲଟେ ବାଘ ହେ,
ତାଙ୍କୁ ତୁଇଁ କହୁଛ ନ ରାଗ । ••

ଖଜୁରୀ ଗଛର ଗୁଣ   କ ବର୍ଣ୍ଣିବ, ଅନ୍ତ ବଂଶରେ ଖ୍ରଣ ହେ,
ଛନ ପୁରୁଷ ହସାବ ଅଣ । •••

ଅଣୀ ବରଷରେ ପୁଅ   ହେବା କଏ କାହିଁ ଶୁଣିଛ କହ ହେ,
ବୋହୂ ପଞ୍ଚରକ ଆରେଣ ପୁଅ । •••

ମେମ ସାହେବଙ୍କ ସହ   ବଲ୍ ନାଚ ନାଚ ଛ ବାହାଦୁରୀ ହେ,
ସଟେଞ୍ଜି ସମୁଦ୍ର କୂଳ ବନ୍ଦର । •••

ପୋଡ଼ୁ ସେ ସୁନ୍ଦରପଣ,   ଯୋଉ୍ ପରପ୍ରୀତ ତୁମର ଗୁଣ ହେ,
ଆମେ ଦେଖୁଁ ଲୋକ ମୁହେଁ ଲୁଣ । •••

ନୟାଗଡ଼େ ରଘୁନାଥ   ତୁଇଁ କହବା ମୁଁ ଅଧିକ ସତ ହେ,
ଦେଇ ଲଙ୍ଗୁଡ଼ବାବା ପଦେ ହାତ । •••

ରସିକ ମଉଡ଼ମଣି,   ବାହା ହେଲ ଖୋଜି ନଜ ଭଉଣୀ ହେ,
ଦେଲ ରକତେ ମିଶାଇ ପାଣି । •••

ନଟସ୍ତ୍ରୀଗୀ ନଯୋଗେ ରହ   ଅନ୍ତପୁରୁ ରାଣୀ ଅନ୍ତର ହୋଇ ହେ,
ଗୈବ ପୀ   ମନ୍ତ୍ରର ପାଇ । •••

ଫଲଗୁସ ପ୍ରୀତ ମିଠା, ଶୁଷ୍କି ଝୁଣୀ ହେଲ ଅଇଁଠାଚଟା ହେ,
ତୁମେ ସତେ ଏଡ଼ିକ କଲଠା । ···

ଛୁଇଁ ମାଆ ମାହେଶ୍ୱରୀ, ଆଠମଲ୍ଲିକେ ମୁଁ କହେଁ ବଗୁର ହେ,
ଧର୍ମ ଗଲଣି ଗଡ଼୍ ବାହାର । ···

ତୃପ୍ତି ଭଜ ଘଣୀ ଶୋଷା, ମେଣ୍ଟିଲ୍ ନାହିଁ କ ପ୍ରେମ-ପିପାସା ହେ,
ଧର୍ମ-ହିଅରେ ବଳନ୍ତ ଆଶା ? ···

ଗୋଟିକ ପରେ ଗୋଟିଏ, ତୁମ ତୀର୍ଥ ସଂଖ୍ୟା ରଖୁଛୁ କଏ ହେ,
ଏତେ ପାପ କ ବସୁଧା ସହେ ! ···

ଗଡ଼ ଭିତରେ ଟଙ୍କା ସଙ୍ଗେ, ଆଖିରୁ କାହାର ଲୋତକ ଗଡ଼େ ହେ,
କଏ ଉଡ଼ାଜାହାଜରେ ଉଡ଼େ । ···

ଧନା କାରେ କନା ଗାଈ, ଯେ ଧବଳେଶ୍ୱରେ କାହିଁକି ଛୁଇଁ ହେ,
ଥରେ ଗଡ଼ ଆଠଗଡ଼ ଯାଇଁ । ···

ତୁମ ଗଡ଼ କଥା ଶୁଣି, କାଠଗଡ଼ ସତେ ପାଲଟିଲଣି ହେ,
ଋଷି ସନ୍ନ୍ୟାସୀ ସେବନ୍ତ ଯାଣି । ···

ଗୁରୁ ବଣ୍ଟେମିନୀ ଲବ ଧର ବସ୍ତୁମିକ ଶିଷ୍ୟ ସ୍ୱରୂପ ହେ,
ଜଲ କଟଦଶୀ-ବୋତଲ-ସ୍ତବ । ···

କାଲି ପର ନୀଳଗିର ଦୋଳଯାତ ଦେଖି ଆସିଛୁ ଫେର ହେ,
ଭୁଲି ହେବ କ ଜୀବନଭର । ···

ବନାରସ କଲିକତା ଭାଇମାନେ ହୋଇ ଅମରମନ୍ତ୍ରୀ ହେ,
ଯେବେ ଜଲଗ୍ନେ ମଣ୍ଡନ୍ତ ସାସ୍ତା । ···

ଧର ରଙ୍ଗ ପିଚକାରି ବାରଙ୍ଗନା ରଙ୍ଗ ଅଙ୍ଗରେ ଭର ହେ,
ଭାବ ସତେ କ ସେ ସ୍ୱର୍ଗପୁରୀ । ···

ରଙ୍ଗ ପାଣି ଝରଝର ଝର ପଡ଼େ ଅବା ତ୍ରିବେଣୀ ଧାର ହେ,
ତହିଁ ନୁଆଁଇ ଦଅ ଯା ଶିର । ···

ଦେଖି ଏ ବହସ୍ତ ନାଠ ଘରେ ଘରେ ପଡ଼ିଯାଏ କବାଟ ହେ,
ତୁମେ ଏତେ ଅଲ୍ଲଜୁକ ଧିଠ । ···

ପୋଡ଼ୁ ତୁମ ରସିକତା,   ଘରେ ବସି ଅଣୀବରତ ମାତା ହେ,
କରେ ସ୍କୁଲ ଗ୍ରାଜ ପ୍ରେମ ଛନ୍ଦା । ...

ଜଣି ଜଣଙ୍କଦେବେଳେ,   ଯାଜିସ୍ତଣୀ ମନ ଶିକାରେ ବଳେ ହେ,
ତୁମ ପାର୍ଶ୍ୱଚର ସଙ୍ଗ ମେଳେ । ...

ବାଉପଦା ଅମ୍ବିକେଣ   ପଦେ ଦଦେ ତାଙ୍କ ଆଡ଼କୁ ଗୃଧ୍ରି ହେ,
ଗଳ୍ପ ଜଣ୍ଡବଙ୍କଣ ଖିଞ୍ଜ ହୋଇ । ...

ରଙ୍ଗବୋଲା ବଙ୍ଗବାଲା,   ଯେତେ କାମିକଳା ଯାଉଁରେ ଚଳା ହେ,
ଦେଖ ଯା ପାଇଁ ଲୁଚ ମଉଳା, ...

ମଣ୍ଡିଲେ ସେ ରାଜପୁତ୍ରୀ,   ଝଣ୍ଡିଲେ କନ୍ଦର୍ପଦର୍ପ ସୁନ୍ଦରୀ ହେ,
ପ୍ରେମ କାରବାରେ ଯେ ଦୁନ୍ଦରୀ । ...

ତାଲଚେର ହିଙ୍ଗୁଲାଣ୍ଡ   ତୁହିଁ ସତକଥା କହିବ ମୁହିଁ ହେ,
କିନ୍ତୁ ଠିକେ ଲୁଗୁଇବନାହିଁ । ...

ଖ୍ରୀମ ତୁମ ଦରବାରେ   କଳାପୋତା ଦେଖି ହସେ ମୋ ଥରେ ହେ,
ନଏ ବାପ ଥରେ ପୁଅ ଥରେ । ...

ନାହିଁ ଚଣ୍ଡାଳ ବ୍ରାହ୍ମଣ,   ଜାତ କ ଅଜାଡ ଉଲେ ବାରଣ ହେ,
ନାହିଁ ବାପ ପୁଅ ଭେଦ ଜ୍ଞାନ । ...

ଘର ନାଙ୍ଗ-ଭେଟପାଇଁ   ଧର୍ମ ଅଧର୍ମ ତ ବାଛିଲ ନାହିଁ ହେ,
ଯମଦୂତ 'ଛନ୍ତି ପଥ ଗୃହିଁ । ...

ଦନଗଡ଼ ଭକ୍ତ ଦତ   ହଟ ବାବାଜିଏ ମଣ୍ଡିଲେ ପୁତ୍ରୀ ହେ,
ଝୋଙ୍କ ରାଣୀଙ୍କ ନୌବନଶିରୀ । ..

ତୁମେ ଏଡ଼କ ହାରାମ,   ଗାଆଁରେ ଲେଖେ 'ନମକହାରାମ' ହେ,
ନାହିଁ ତୁମକୁ ଲାଜ ସରମ । ...

ଦଣପଲ୍ଲାରେ ଯା ଡରେ   ଝାଡ଼ାବାନ୍ତି ଛାଡ଼ ପଳାଏ ଖରେ ହେ,
ସେହି ମହାବୀର ତୁଇଁପାରେ । ...

'ନଅରରେ ଛଅ ରାଣୀ,   ବେହିଅପଣରେ ଥୋଇଲ ଆଣି ହେ,
ରାଜକୋଳୁଁ ପଳାଇଲ୍ଲ ରାଣୀ । ...

‘ଫଲେଣ୍ଡ ମହିମା’, କ୍ଷମା   କର, ଗାଏ ତୁମ ଗୁଣଗାରିମା ହେ,
ବୋଲଦେଲ ଯା ତୁଳେ କାଳିମା । …

ହସ ଲୁଟେ ଦେଖି ଭଲ   ଅନ୍ତଃପୁରେ ବୈଶ୍ୱ ପୀରଛପାଲ୍ଲ ହେ,
ଆମ କପାଳେ କି ଏହା ଥିଲା । …

ଅଛ ଭୃତ୍ୟବଳେ ପଗ,   ଭୃଟିରଥୀ ଲୁଟେ ପ୍ରୀଷ୍ଟପମସ୍ୱ ହେ,
ବାଜେ କି ଅପବାଦ ନାଗସ୍ୱ । …

ଟେଙ୍କାନାଲେ ଯିବ କୁଦ,   ତୁହିଁ କହିବ ମୁଁ ଜୋରନ୍ଦା ଗାଦ ହେ,
କଳା ପୋଡ଼ିଯାଉ ତୁମ ବୁଦ୍ଧି । …

ବେଶ୍ୟା ହିବସନ କର   ବାରାଙ୍ଗନାକୁ ଯାଚ ଯୌବନ ଶିଖ ହେ,
ଭୟେ ଡ଼ାକଇ ବଗୃଧ ହର । …

ବାବାଜି ହଜନମାନେ   ସଜାଇ କୁଳଟା କୁଚ ଯୁଗଳେ ହେ,
ମୁହଁ ଲୁଗୃଅ ଜାନୁ ଯୁଗଳେ । …

ଦେଖି କା ସୁନ୍ଦରପଣ,   ପଚଶ ଜଣେ କରୁଅ ରମଣ ହେ,
ଏଥି କି ଅଛି ରସିକପଣ ! …

ଥରେ ଚମ୍ପକ ଦ୍ୱାଦଶୀ   ଡିଟିଡିଅଟେଡ଼େ ଦେଖି ମୁଁ ଖୁସି ହେ,
ଏବେ ଅଖି ଆଗେ ଯାଏ ଭାସି । …

ପରଜାଙ୍କୁ କୁଅବୁଅ   କର କାଳିକାର ମେଅଢ଼ ଚୁଅ ହେ,
ଚୁଖା ପରେ କି ପିମ୍ପୁଡ଼ି ଠିଆ । …

ଘରେ ଘରେ ପଶିକର   ଲୁଟିବ ଯୁବତୀ ଯୌବନଶିରୀ ହେ,
ଚେଲ ବଜାରେ କହି ବଜାଇ । …

ପୋଡ଼ୁ ସେ ରସିକପଣ,   ଅନ୍ତଃପୁରେ ଯାଇ ଘରଣୀ ଗଣ ହେ,
ହେଉନାହିଁ ତ ଗଣୀହରଣ ? …

ଅଜ ଅଜ ରାଜ୍ୟ କଥା,   କେତେ କହିବ ମୋ ଘୂରଏ ମଥା ହେ,
ସବୁ ଗୋଟିଏ କଥାର ଲଥା । …

ବଡ଼ଦରେ ବନକେଇ,   ସାତକୋଶୀ ଦଣ୍ଡେ ମୁଣ୍ଡ ବଢ଼ଇ ହେ,
ସତ କହିବ ତାଙ୍କୁ ଅନାଇ । …

ଚଣ୍ଡାମ୍ବା ଖଡ୍‌ଗଧାରିଣୀ, ଯେଣି ଜଣଜଣେ ଜନଗୃହିଣୀ ହେ,
ତାଙ୍କୁ ଛୁଇଁ କହେଁ ଗୁପ୍ତବାଣୀ ।...

କେତେ କଅଁଳ କୁଆଁରି ରାଜ ଅଧକେଳେ ଚଢ଼ି ମୁଆରି ହେ,
ବିଜେ କରନ୍ତି ଅନ୍ତପୁରି ।...

ଯୁବକ କୋଳୁଁ ଯୁବତୀ ଯେଣି ଅଭିସାରେ ପୁଣି ମଣ୍ଡନ୍ତି ହେ,
ରାଜସଭରେ ରାଜ ପୁତ୍ରାନ୍ତ ।...

ଦାଣ୍ଡେ ହାଟେ ବାଟେ ଘାଟେ ନଈନାଳକୂଳ ଗମ୍ଭୀର ପାଟେ ହେ
କେତେ ନାରୀ ହରୁଛ କପଟେ ।..

ତୁମକୁ ଦିଅଁ ଲକ୍ଷଣୀ ଦେଇ ହରାଇଛୁଁ ମାଆ ଜନନୀ ହେ,
ଖାଇ ବଦଳେ ମାଡ଼ କହୁଣୀ ।...

ହେଲେ ପରଜା ରଇତ, ଆମର ନ ଥାନ୍ତି ମାନ ମହତ ହେ,
ନିଜ ଝିଅ ବୋହୂ କି ଦିଅନ୍ତି ? ..

ପାଇ ବିପୁଳ ସମ୍ପଦ ସମ୍ପଦ ମଦରେ ହୋଇଲ ଅନ୍ଧ ହେ,
ଦେଶେ ପଶୁ କଲ କୋଳ୍ପ ବନ୍ଧ ।..

ରାଜସିକ ଖାଦ୍ୟ ଖାଇ ନିଶିଦିନ ତୂଳି ତଳପେ ଶୋଇ ହେ,
ତହିଁ ପାରେ କି ଚରିତ୍ର ରହି ।

ଏ ମୋ ବିଶାଳ ଉତ୍କଳ, ସାହିତ୍ୟ ସମ୍ପଦ ଯାର ବିଶାଳ ହେ,
ଯାର ବିଶାଳ କଳାକୁଶଳ ।...

ଯାର ପଠାଣୀ ସାଆନ୍ତ ହେଲେ ବହୁଥିଲ୍ ରାଜରକ୍ତ ହେ,
ଦେଲ ତା କୁଳେ କାଳି ବୋଳି ତ ।...

ଯାର ଭଞ୍ଜବଂଶ ଛୁଆ ବୈଦେହୀଶ ଗାଇ ଘୋଷିଲ୍ ମାଆ ହେ,
ତୁମେ ବୁଡ଼ାଇଲ ତାର ନାଆଁ ।...

ମଣ୍ଡିଲ୍ ପାରଳା ଗଳା ଯା' ଗୋପାଳକୃଷ୍ଣ ତୁଳସୀମାଳା ହେ,
କି ସାହସେ ବୁଡ଼ାଅ ତା ଭେଳା ।...

ପ୍ରଗୃହିଲ ବିଭସ୍ତତା, ପରଜାଙ୍କୁ ଅଜ୍ଞା କାଟିଲ ଶତା ହେ,
ଜାଣି-ଜାଣି ଲୁଟିଲ୍ କି ପିତା ?...

ସବୁଗଲା ସାରା ଦେଶ, ମରୁ ମୋ ସମାଜ ହେଲା ପାଉଁଶ ହେ,
ଜଳ ପୋଡ଼ିଯାଉ ରାଜବଂଶ ।...

ଯେତେ ଯେତେ ଅତ୍ୟାଚାର କରିଗଲ ଠିକେ ମନେ ବିଚାର ହେ,
ଠିକେ କହୁଛି ହୋଇ କାତର ।

ବଣିଯିବ ବୋଲି ଦାନ୍ତ କଥା କହୁଁ ଦେଇ ପାଟିରେ ହାତ ହେ,
କେଡ଼େ ହୀନମାନ କଥା ଏ ତ ।...

ଆମ ଧନେ ଗନ୍ଧାଘର ଭରି, ଛିଣ୍ଡା କନ୍ଥା ନାହିଁ ଆମର ହେ,
ପିଠି ପଡ଼ିଲା ଦାଣ୍ଡେ ଗୁମର ।

ଜଳେ ତୁମ କଳ ଚୂଲି, ଆମେ ହେଲୁ କଲିକଟିଆ କୁଲି ହେ,
ଗଲା ଆମକଥା-ସବୁ ଭୁଲି ।

ପରଜାଙ୍କ ଅରଦଳି ହକ ସବୁ ଦେଲ ପାଦରେ ଦଳି ହେ,
କେତେ ବଳିଛି କୁକୁର ପାଳି ।...

କେତେ କେତେ ଚାଷୀଙ୍କର ଘର ଲୁଟି କଲ ସର୍ବସ୍ୱ ଜୁର ହେ,
ଶେଷେ ହେଲେ ସେ ଦେଶୁଁ ବାହାର ।

ନୁହେଁ ଦଉଟି ଗୋଟିଏ, ରାଇଜେ ପ୍ରମାଣ ଅଛି କୋଟିଏ ହେ,
ପାଉ ନାହାନ୍ତି ଦାନା ମୁଠିଏ ।...

ଲୁଟିଲ ଘର ଦୁଆର, ପିଠିରେ ଦେଲ କୋରଡ଼ା ପାହାର ହେ,
ରାଜ୍ୟେ ରହିବେ ହୋଇ କାହାର ?...

କଟକ ସହରେ ଆସି, ରିକ୍‌ସା ଟାଣେ ତୁମ କଟିଆ ଚାଷୀ ହେ,
କାଟେ ଅଧେ ଦିନ ଉପବାସୀ ।

ଦୂର ରେଙ୍ଗୁନରେ ଯାଇ କେତେ ପିଲା ବୁଢ଼ା ମୋ ଚାଷୀଭାଇ ହେ,
ଖଟେ ମାଆ ଭଉଣୀଙ୍କୁ ନେଇ ।

ବିଦେଶରେ କଳଘରେ କୁଲିଗିରି କରି କା ଦିନ ସରେ ହେ,
ପୁଣି ପରେ କେ କେଉଁକରେ ମରେ ।...

ଆଖି ଯା ଦେଖିଛି ମୋର, ଜୀବ ଗଲେ ଯିବନାହିଁ ପାଶୋର ହେ,
ଗଢ଼େ ଠିକାଦାର କାରବାର ।...

ନ ସହି ପେଟ ବିକଳ,   ମଠର ପାଖରେ କୁଟୁମ୍ବ ଠୁଳ ହେ,
ଗ୍ରୁଢ କରତେ ବିଦାୟ ବେଳ ।...

କେତେ କିଶୋରକିଶୋରୀ   ଘରଦ୍ୱାର  ଭାଇ ବନ୍ଧୁ ପାଶୋରି ହେ,
ଯାନ୍ତି ଠିକାଦାର ଗାଡ଼ି ଧରି ।...

ମଣିଷକୁ ପଶୁ ମଣି,   ଠିକାଦାର ଜଣ ଜଣକୁ ଗଣି ହେ,
ଦିଏ ମଠରେ ପକାଇ ଖଣ୍ଡି ।...

ମଠର ଭିତରେ ରହି   କାତରେ କାନ୍ଦନ୍ତି ଆତୁର ହୋଇ ହେ,
ବୋଧ ଠିକାଦାର ବେତ ଦେଇ ।...

ନିମିଷେ ତରି ନ ସହେ,   ପବନ ବେଗରେ ଅଖି ମୋ ଧାଏଁ ହେ,
ଢିଙ୍କିଶାଳୁଁ ଢେଙ୍କାନାଳ ଯାଏ ।...

ଶୁଭିଯାଏ କାଟନ ନାଦ,  ମୃଦଙ୍ଗ ଘରେ ଯେ ବାଜେ ବାଇଦ ହେ,
କେତେ ବିକଟାଳ ସେ ଶବଦ ।...

ମୃଦଙ୍ଗ ଘର ଭିଆଣ   କରି ଦେଇଛି ଜୀଅନ୍ତା ମରଣ ହେ,
ହୁଏ କି କଲବଲ ଜୀବନ ।...

କାଲେ ତା ବିକଳ ଡାକ   ଶୁଣି ଦୁଃଖେ ଧାଇଁ ଆସିବେ ଲୋକ ହେ
କରି କାର୍ତ୍ତିନ ତା ଗୃହପାଖ ।...

ଜଣ ଗୋଟି ଗୋଟି କରି   ଉପାଡ଼ି କା ନଖେ ଆଲପିନ୍ ଭରି ହେ,
ମାରି ପାଣି ଛିଞ୍ଚି ଚେତା କରି ।...

ପାନରେ ମରିଚ ଭରି   କଲବଲେ କେତେ ମାରିଛି ଧରି ହେ,
ନାଶ୍ୱ ମର୍ମସ୍ଥଳେ ଛୁଞ୍ଚି ଭରି ।...

ଯେବେ କେ ପାଖକୁ ଗଲା,   ଲଙ୍ଗଳା କରି ନଗୃଥ ଅମଲା ହେ,
କହ କି ବେଭାର ଏହା ଭଲା ।...

ଭାବେଁ ତୁମେ ଅଗ ଗବ,   ନ ପାଇବ ଜଳ ପାତାଳେ ଠାବ ହେ,
ଆଗ ତୁମରି ବିଗ୍ରହ ହେବ ।...

ମଣିଷ ଜନମ ପାଇ   ବଳଦ ବଦଳେ ମଣିଷ ଜୋଇ ହେ,
ଠାଣ ଖଗରେ ଠେଣାଅ ମହୁ ।...

ଲେଖିବାକୁ ଏ ଚରିତ   ନ ବଳେ ମୋ ମନ ନ ଚଳେ ହାତ ହେ,
ପଶୁକୁଳେ ଯା ନୋହିଲ ଜାତ । ···

ଆଜ କେ ହୁଅନ୍ତା ରଜା,   ହୁଅନ୍ତ କ ଗ୍ରାମୁ ତାର ପରଜା ହେ,
ସଜା ଦଅନ୍ତା ବୁଝନ୍ତ ମଜା ।

ସଜାଇ ତୁମକୁ ଘୋଡ଼ା   ସବାର ହୁଅନ୍ତା ମାରି କୋରଡ଼ା ହେ,
ତୁଣ୍ଡେ ଭରନ୍ତା ପିତା ତରଡ଼ା । ···

ରଚନ୍ତା ମାଆ ମଙ୍ଗଳା   ତତଲ ବାଲିରେ ରଜା-ବେଙ୍ଗଳା ହେ,
ଯୋଚ ଦଅନ୍ତା କରି ଲଙ୍ଗଳା । ···

ଅସଲକୁ ଗୁଡ଼ ସୁଧ   ଶହେ ସ୍ତୁଁ ଭୃଟଗ ହୁଅନ୍ତା ଶୋଧ ହେ,
ଠିକେ ପାଆନ୍ତ ବା ମନେ ବୋଧ । ···

ପରଜାଙ୍କ ତଣ୍ଟି କାଟି   ଧନମାନ ସବୁ ନେଇଛ ଲୁଟି ହେ,
କେତେ ଦେଇଛୁଁ ରକତ ଭେଟି । ···

ଗତ ଖାଇ ନାହିଁ ଖତ,   ଅଲଭ୍ୟ କଥା ସେ ଲଭି ନାହିଁ ତ ହେ,
ହେଲା ତେଇଶି ବରଷ ଗତ । ···

ବିଶ୍ବାଳପୁଅ ଦଆନ   ରାଜକେମା ପ୍ରେମେ ବଳାଇ ମନ ହେ,
କରିଥିଲେ ଯେ ମେଳ ଭିଆଣ । ···

ସେ ତ କନ୍ଧ କୋଲ ଗୁର,   ଅଡ଼ିଲେ ତଡ଼ିବେ ପୀରଢ଼ଗୈର ହେ,
ହେଲେ ଦଆନେ ତ ହରବର । ···

ଲେଉଡ଼ିଲେ ସଇନବଳ,   ପୋଡ଼ିଲେ ପତର କୁଡ଼ିଆ ମାଳ ହେ,
ଆଖି ମୋ ନ ଦେଖୁ ଏ ବିକଳ । ··

ଅଛୁ ମେ ମେଳିଆ ଠୋଠା,   କନ୍ଧୁଣୀଙ୍କ କୁଚଯୁଗଳ କଟା ହେ,
ଯହିଁ ହେଲା ଫେଟରେ ଗୋଇଠା । ···

ନବାବ ଥାନ ଅଥାନ   ଭରିଲ ବନ୍ଧୁକ ସଙ୍ଗୀନ ମୁନ ହେ,
ମାଆ ରକ୍ତେ କଲା ଶିଶୁ ସ୍ନାନ । ···

ମାଆ ବୁକୁଁ ସ୍ନେହବାରି   ନ ଝରି ରକତ ପଡ଼ିଲା ଝରି ହେ,
ଦେଲ ତାକୁ ଛୁଆ ମୁହେଁ ଭରି । ··

କଅଁଳ ଶିଶୁ ଅଙ୍ଗାରେ  ତପ୍ତ ରକ୍ତ ପିଏ ଭ୍ରବ ମା ସ୍ତନ ହେ
ରକ୍ତ ଶୋଷଇ ଶିଶୁ ଜୀବନ । ···

ମାଆ କୋଳୁ ଛାଣି କାହିଁ  ଖଣ୍ଡ ହୃଦରେ ଛୁଆ ଦେଲ ପକାଇ ହେ,
ଛୁଆ ମଲ୍ ମାଆକୁ ନକାଇ । ···

କାହିଁ କର ବଳାତ୍କାର  ମାଆର ଯୌବନ କରଲ ଜୂର ହେ,
ବାପ ପୁରୁଷାଙ୍କେ ଦେଇ ଖୁର । ···

ବଳକଲେ ଯେ ମାରେ ଡଆଁ ,  ତା ପ୍ରସବ ସ୍ଥାନେ ଦେଇଛ ଗଅଁ ହେ
ଝିଅ ହରଛ, ବାପଟି ଠିଆ । ···

ଜୋତାରେ କାହାକୁ ମାଡ଼  ପୂରାଇଛ କେତେ ବାଉଁଶ ବାଡ଼ ହେ,
ପୋଡ଼ ନ ମଲ ଚଡ଼କ ପଡ଼ । ···

କାହିଁ ବଣ ଅନ୍ଧୁଆରେ  ଲୁଚ କେ ରହିଲ୍ ପତରମାଳେ ହେ,
ପ୍ରାଣବଳକେ କେ ଟଛଡ଼ାଲେ । ···

ମାରିଲ୍ ବନ୍ଧୁକ ଗୁଳି,  ହନୁପର ଗଛୁଁ ପଡ଼ିଲେ ଟଳି ହେ,
ଦେଲ୍ ବାପ ଆଗେ ପୁଅ ବଳି । ···

ଛାଣି ଦୁଇଡାଳ ଯୋଡ଼  ଦୁଇ ଗୋଡ଼ ବାନ୍ଧି ଦେଇଛ ଗୁଡ଼ ହେ,
ଫାଡ଼ ହୋଇ ମଲ୍ ଗୁଡ଼ ରଡ଼ । ···

କାହିଁ ଭୂଅସୁଣୀ ଜଣେ  ଲାଜ ଭୟେ ଲୁଚେ କବାଟ କଣେ ହେ,
ଶୃର ପରୁ କେ ତା’ କାନ ଠାଣେ । ···

ଲୁଟିଲ ଦେଇ ବିପଦ,  ବକ୍ଷସ୍ଥଳେ ଠୁଳ ଶୋ'ଭ ସମ୍ପଦ ହେ,
ଯହିଁ ଦଅ କଳା ଜଉମୁଦ । ···

ବସିଛି କନ୍ଦା ବଜାର,  ମଲେ ଛଉଣ ବଢଣ ହଜାର ହେ,
ଏବେ ହେବ ତାହାର ବିଚାର । ···

ବଇଷ୍ଣବ ତୁମ ଭାଇ,  ଦେଲ ତାଙ୍କୁ କଳାପାଣି ପଠାଇ ହେ,
କାଲେ ସରଗେ ରହିଲେ ଯାଇଁ । ···

ମଦନ ଭାଇ ଗୋବିନ୍ଦ,  କେ କହିବ ଲଙ୍ଗରାଜ ଅନନ୍ତ ହେ,
ଆଜ ଭୁଜା ହାତେ ରାଜଦଣ୍ଡ ।···

ବନ୍ଦୀଶାଳେ ଭଉ ମାଡ଼ ଦେଇ ଭାଙ୍ଗିଥିଲ ଯାହାଙ୍କ ହାଡ଼ ହେ,
ତାଙ୍କ ହାତୁଁ ପାଇବ କ ଛାଡ଼ । ...

ଅଛ ମାଟିକଠା ହାତ ଖୋଜିବୁଲେ ତଣ୍ଟିକଠା-ରକତ ହେ,
ପରଖିବା କଏସେ ଶକତ । ...

ଲୋକନାଥେ ମୋ ଭରସା, ଚନ୍ଦ୍ରେ ଚକୋର କରନ୍ତି ଆଶା ହେ,
ଉଦେ ଚୈତନ ହେଉ ସୁଦଶା । ...

ଆଜ ଯେତେ ଅତ୍ୟାଗୃର, ଅଥଗ୍ର ଗ୍ରୁଢରେ ପଥର ଗାର ହେ,
ଗଡ଼େ ମାରବେ ନୟନୁଁ ନୀର । ...

ରଣପୁର ଫାସିକାଠେ, ରଘୁ ଦିବାକର ରକତ ଛୁଟେ ହେ,
ଶ୍ରଦ୍ଧ ପଥର ଗ୍ରୁଢ ମୋ ଫାଟେ । ...

ଗାଙ୍ଗପୁର, ତାଲଚେର ଦରବାର କଲେ ଯେଉଁ ବଗ୍ଗୁର ହେ,
ହେଲ୍ମ ମେସିନ୍ ଗନ କାରବାର । ...

ଦାବାକୁ କାକେ କ ଧର ଅସଂଖ୍ୟ ପରଜା ଦେଲେ ଯା ମାର ହେ,
ବଣଜନ୍ତୁ କ ମାରେ ଶିକାରୀ ! ...

ଢେଙ୍କାନାଳ ଗୁଳମାଡ଼ ଭାଙ୍ଗିଲା ଲକ୍ଷ୍ମଣ ଗ୍ରୁଢର ହାଡ଼ ହେ,
କଠ, ହୁଣ୍ଡି ମଲେ ଖାଇ ମାଡ଼ । ...

ନୀଳକଣ୍ଠପୁର ଗାଆଁ କଣ୍ଢ ଭୁଠେ ଉଠେ ବାଜଆ ନାଆଁ ହେ,
ମଲା ପଛେ କ ଛାଡ଼ିଲା ନାଆ । ...

ଅଜ ବାଜେ କାନେ ମୋର ବାଜଗଉତ ବକଳ ଚକ୍ରାର ହେ
ହେଲା ପୁଲସ ଗୁଳ ଶିକାର । ...

ଆଖି ଆଗେ ଯାଏ ଦଶି ସଜପୁଟା ଫୁଲ ହୋଇନ ବାସି ହେ,
ସତେ ସରଗେ ହସଇ ବସି । ...

ଦେଖ ଛାମୁ ଦୂରେ ଦେଖ, ଦଶେ ସାନ ଭାଇ ବାଜର-ମୁଖ ହେ,
କାନେ ବାଜେ ବୀର ବାଛ ଡାକ । ...

ଛାତ ମୋ ଯାଉଛି ଫାଟି, ଆଖିରେ ଲୋତକ ଉଠୁଛି ଫୁଟି ହେ,
କଥା ରହୁ ମଥା ଯାଉ ତୁଟି । ...

ଶିଶୁ ବଉଦ କରମା   ଗଢ଼ି ଗୃହୁ କୋଣାରକ ଧରମା ହେ,
ରଖିଥିଲ ତା ଜାତି-ଗାରିମା । ...

ଗଢ଼ି କୋଟି କୋଣାରକ   ରଖିଗଲେ ବାଜି ମୋ ଦେଶ ଠେକ ହେ,
ଧନ୍ୟ ଯା ଲାଗି ଅମରଲୋକ ...

ମୋ ଜାତି-ହାତୀ-ମାହୁନ୍ତ   ହଜି ଯାଇ ନାହିଁ ବାଜି ଗଉତ ହେ,
ଖୋଜି ବୁଲେ କି ଗଜ-ରକତ । ...

କରନ୍ତା କେହି ଅର୍ପଣ   ଲକ୍ଷ ଗଜରକ୍ତେ ଜଳ ତର୍ପଣ ହେ,
ତୃପ୍ତ ହୁଅନ୍ତା ହେତ ପରାଣ । ...

ରାଜ୍ୟ ସ୍ତ୍ରରଖାର କରି   ସାରା ଦେଶଟାକୁ ଦେଇଛ ସାରି ହେ,
ନର-ରାକ୍ଷସ ରୂପକୁ ଧରି । ...

କେତେ ଯେ ଫିକର ଖଞ୍ଜି   ପରଜା ପୁଅକୁ ମାରୁଛ ଗଞ୍ଜି ହେ,
ତୁମେ ସବୁ ଏକା ଲାଭ ମଞ୍ଜି । ...

ଚିର ଅବହେଳା କରି   ଭାବୁଥିଲ ଦେବ ଶଳାଙ୍କୁ ମାରି ହେ,
ଗାଡ଼ିଚକ ଏବେ ଗଲା ଘୂରି । ...

ଆମରି ରକତ ଶୋଷି   ରାଜକୋଷେ ଧନ ଦେଇଛ ଠେସି ହେ
ଆଉ ନାହିଁ ବେଳ ଡେରି ବେଶି ।...

ଚାଲିଣି ସେ ବେଳ ଗଡ଼ି,   ଗଲା ସବୁ ଏବେ ହାଣ୍ଡିରେ ପଡ଼ି ହେ,
ଦେବୁଁ ନାହିଁ କଡ଼ା କ୍ରାନ୍ତି ଗୁଣ୍ଡ । ...

ଅସଲେ ମିଶାଇ ସୁଧ   ନଷ୍ଟେଁ ନେବୁଁ ଆମେ ଯା ପ୍ରତିଶୋଧ ହେ,
ଆଉ ନ ଘେନବୁଁ ପିଲାବୋଧ । ..

ଭାବିଛ କରିବ ବୋଧ   ଦେଇ ଗୋଟେ ଗୋଟେ ମନ୍ତ୍ରୀର ପଦ ହେ,
ଅଛୁ ତୁମ ପରି କେ ଅବୋଧ ? ...

ଭାବିଛ ପ୍ରଜାମଣ୍ଡଳ   ଠକାଇବ ଗଢ଼ି ପ୍ରଜାମଙ୍ଗଳ ହେ,
ହାରିଯିବ କି ହଳ ଲଙ୍ଗଳ ? ...

ଆଜି ପାଣ ନାଜୀ ପରି   ହିଁକୁମ ହଅ ଯା ଦେଶୁ ବାହାରି ହେ,
ପାଦଚଟାଙ୍କୁ ଫିକର କରି । ...

ଆମ ଧନ ଖାଇ ପିଇ   ତୁମ ଗୁଣ ଗାଇ ବୁଲିବେ ଯାଇ ହେ,
ଗୋଟିପରିକ ଆମରି ହୋଇ । ...

ହିନ୍ଦୁ ମୁସଲିମ ବାଦ   ବଢ଼ାଅ ଆଦମ ଓଡ଼ିଆ ଭେଦ ହେ,
ଭାଇ ଭାଇରେ ଭେଇ ବିବାଦ । ...

ପାଠଣା ପାଟଣେଶ୍ୱରୀ   ଛୁଇଁ କହିବି ମୁଁ ହେମତ କରି ହେ,
ଛମୁ କରୁଛ ଓପ୍ରାତଗିରି । ...

କୋଶଳ କଳା ମଣ୍ଡଳ,   ସବୁ କଳାପୋତା ଯେଉଁଠି ଠୁଳ ହେ,
ମନେ ପଡ଼େ ଲାଇସେନ୍ସ ହେଲ । ...

ପାଇଥାଲି ପ୍ରେତ ପରି   ଭାବ ଦେଶେ ଭେଦଭାବ ଛଆରି ହେ,
ତପ୍ତ ବୈତରଣୀ ହେବ ପାରି । ...

ଗଳିତ ଫସରଫାଟି   କାଣିଆ କପିଳା ଆଉ ନ ଭେଟି ହେ,
ହେଲି କୋଶଳ ଘଇଜ ମାଟି ।

କଳାହାଣ୍ଡି, ସୋନପୁର,   ବୌଦ୍ଧ ସଙ୍ଗେ କଲ ଗୌନାଭି ସ୍ଥିର ହେ,
ପାଣିଫଠା ଧଇଲି ଏଥର । ...

ସମ୍ବଲପୁରକୁ ଯାଇ   ମୋ କଥା ଅଟଥା ପାରକ କହ ହେ,
ବୁଢ଼ାଲଙ୍ଗକୁ ଟିକିଏ ଛୁଇଁ ? ...

ଗଳାରେ ତୁଳସି ମାଳ,   ଚତାଚଇତନ ଛଲକ କଲି ହେ
ଦେଖି ଭୁଲି ହେଲ ଗଲି ଗୃହ । ...

ଅଖି ବୁଜି ସିନା ପୁଷି   ଖୁସିମନେ ଷୀର ପିଉଛ ବସି ହେ,
ଦୁନଆକୁ ଗଲଣି ତ ଦଶି ।...

ହବଛ କୂପ ମଣ୍ଡୂକ   ସବୁ ପଗ ଆଉ ଠେକବ ହେଜ ହେ,
ଝାଡ଼ ଜଙ୍ଗଲେ ରହ ମୃରୁଖ । ...

ଅନ୍ଧାରେ ଅନ୍ଧାରି କାଚ   ଆଉ କେତେ କାଳ କରିବ ପାଞ୍ଚ ହେ
ତୁମ ଲାଗି ଏ ଓଲଟ ଖେଞ୍ଚ । ...

କହୁଥିଲି ହେଲ ଥାଉଁ   ମଦତି ଫଂଦାରେ ପଡ଼ ନ ଯାଉ ହେ,
ହାତେ ଜବ କାଠ ବାନ୍ଧି ଆଉ । ...

ମୋ ଅତୀତ ପୋଥି ଗାଥା  ପିଠାଇଲେ ଭୁଣ୍ଡେ ଫୁଟେ ନା କଥା ହେ,
ଲାଜେ ଗ୍ଳାଏଁ ନଇଁପଡ଼େ  ମଥା । ...
ଗଙ୍ଗାଠାରୁ ଗୋଦାବରୀ   ଥିଲା ଯେ ଓଡ଼ିଆ ସୀମା ବସ୍ତାର ହେ,
ଦାଦନେ ତା ଜାଉ ପତାକା ଧରୁ । ...
ଭୁଟିଛୁ ମାଆର ଶିରୀ,   କାଟିନ୍ତି ଭଗାସ୍ତି ଜବର କରୁ ହେ
ଟଣ୍ଟେଁ ଛୁଟେ ରକତ ଲହରୀ । ...
ସାତ ସିନ୍ଧୁ ତେର ନଈ   ଯେ ଜାଉ ବଣିଜ ବୋଇତ ବାହୁ ହେ,
ଗଲା, ସେ ଦାନ ସପନ ଗ୍ଳଇ । ...
ଯେ ଜାଉ ପାଇକପୁଅ   ବୁହାଇ ଅଗାଉ ରକତ ସୁଅ ହେ,
ଘରେ ଫେରନ୍ତି ମରଦ ପୁଅ । ...
ରହିଛନ୍ତି ସେ ଜାଉ ଜୀଇ,   ଜାଉ ଅବନଉ ଭୂମର ପାଇଁ ହେ,
ଗାଈ ରଖେ ମୋ ପାଇକ ଭାଇ । ...
ଗଡ଼େ ଗଡ଼େ କରୁ ବାଣ୍ଟ,   ଗଢ଼ିଲା ଯେ ଜାଉ ଏ ଗଡ଼ଜାତ ହେ,
ଅଜି ମାରୁ ତା ମୁହଁରେ ନାତ ! ...
ଆମର ଯାନ ଯାତରା   ଆମ ପିଠା ପଣା ମିଠା କାକରା ହେ,
ସବୁ ଅଛନ୍ତି ଏବେ ଏକାପରା । ...
ବାର ପୁନେଇ ପରବ,   ଝୋଟି ପକା ଖତାଲେଖା ଗରବ ହେ,
ଅଛନ୍ତି ଏକାପରୁ ତ ସରବ । ...
ଏକା ଆମ ବେଶଭୂଷା,   ଏକା ଆମ କଥା ଓଡ଼ିଆ ଭାଷା ହେ,
ଏକା ଆମର ମାଇପି ଖୋଷା । ...
ଏକା ମୋ ସାଗ ସାଗିଣୀ   ହରଗ ଦୁଆର ଏକା ମଶାଣୀ ହେ,
ଆଉ ନ  ଖାଉ ପର ଗୋସାଣୀ । ...
ଏକା ଆମ ଶିକ୍ଷା ଦୀକ୍ଷା,   ଶିରା ଖନ୍ତୁ ଦେଖ ରକତ ଏକା ହେ,
ଚକାଡୋଳା ତ ଭରସା ଏକା । ...
ମୋଟେ ଅମେ ଦେଢ଼ କୋଟି   ଶାସନ ଆମର ଯତାଇଣାଟି ହେ,
ନାହିଁ କଥିବ କାହିଁ କେଉଁଠି । ...

ନାହିଁ ଶାସନ ସମତା,   ନାହିଁ ଅଉ ଆମ ମେଳ ଏକତା ହେ,
ଲୋପ କଲ ଆମ ଜାତୀୟତା । ...

ଝାଉଁଳଛୁ ଜାତି ମଥା,   ମଉଳଛୁ ଦେଶ ଅତୀତ ଗାଥା ହେ,
ତୁମ ଯୋଗୁଁ ଏ ହୀନ ଅବସ୍ଥା । ...

ରକ୍ଷି ସତେଇଶ ଯୁଗ,   ଜାଳୁଛ ଅନ୍ଧାର-ଶାସନ-ଜାଗ ହେ,
ଆଣି ଭାଇ ଭାଇରେ ବିରାଗ । ...

କୋଟି କଣ୍ଠ ଫୁଟି ଦେଖ   ଉଠେ ମାଆ ମାଆ ବିକଳ ଡାକ ହେ,
ଥରୁ ଉଠିଲାଣି ଦେବଲୋକ । ...

ଦେଖି ମାଆ ବିକଳାଙ୍ଗ   ଭୁଲ ସାର୍ବଭୌମ ସୁନେଲି ରଙ୍ଗ ହେ,
ତୁମ ବୃଥା ଅଭିମାନ ଭଙ୍ଗ । ...

ଛାଡ଼ ଐରାବତମେଳ,   ଲୋଡ଼ନାହିଁ ପୋତା ସଇନ ବଳ ହେ,
ତେବେ ପାଇବ ବା ଥଳକୂଳ । ...

ଗୌନାଭ, କୋଶଳ ଛାଡ଼,   ପଡ଼ଶା ଓଡ଼ଶା ସାଙ୍ଗରେ ଯୋଡ଼ ହେ,
ବୋଧ ହଅନାହିଁ ଲେଡ଼ ଗୁଡ଼ । ...

ମୋ ଦେଶ ଜାତି ବିଶାଳ,   ବିଶାଳ ଦଶାଣ ବଡ଼ ଦେଉଳ ହେ,
ବଡ଼ପଣ ରହୁ ଚିର କାଳ । ...

ମାନ୍ୟବର ମହତାବ   ଯାର ପାଦଯୋଗ୍ୟ କେହି ନୋହିବ, ହେ,
ବାଢ଼ିଥିଲେ ପରା ଏ ପ୍ରସ୍ତାବ । ...

ଅସମ୍ଭବ ସମ୍ଭବବ, ଲଙ୍କାରେ ଦେବତା ଅବତରିବ ହେ,
ସେ ତ ଅସୁରଙ୍କ ଜନ୍ମଠାବ । ...

ଧ୍ୱଂସ ଯାର ଚଳା   କୁଣ୍ଡାଏ, ତାହାର ବିପଦ ବେଳା ହେ,
ଆସିଗଲା ଭାସିଯିବ ଭେଳା । ...

ଯାର ବାହୁଛାୟାତଳେ   ଭୋଗବିଳାସରେ ବଢ଼ିଲ ହେଳେ ହେ,
ସେ ତ ଗୁଡ଼ିଗଲେ ଏ ଅବେଳେ । ...

ନ ଦେଖି ଆମର ମେଳ   ବସି କର ତୁମେ ଝାଳମଝାଳ ହେ,
ତେଣେ ଉଗାଶି କଷଣ୍ଡ ବଳ । ...

ଭାଇ ଭାଇ ମିଶୁଁ ମିଳି   ଚୂନ କାଳି ଦେବୁଁ ମୁହଁରେ ବୋଳି ହେ,
ଖାଇ ବଞ୍ଚି ମାସିକିଆ ପାଳି । ...

ଦେଖି ଆମର ଏକତା   ଦରଗୁଁ ଅଶିଷ ଦେବେ ଦେବତା ହେ,
ନଷ୍ଟେ ହୋଇବୁଁ ଜଗତଜିତା । ...

ଆମେ ଯେବେ ଦେଢ଼କୋଟି   ଅଣ୍ଟା ଭିଡ଼ି ଥରେ ପଡ଼ିବୁଁ ଉଠି ହେ,
ଛିଣ୍ଡି ପାରିବ କି ରାଜ ଗୋଷ୍ଠୀ । ...

ଯେତେ ରାଜା ବାହାଦୁର   ବାହାଦୁରୀ ଦଣ୍ଡେ କରିବୁଁ ଦୂର ହେ,
ବଳେ ନେତା ହେବେ ଆଗଭର । ...

ପାହିଛି ଜଅଁସ ନଶି,   ପୂର୍ବ ଦିଗରେ ଗଲାଣି ଦିଶି ହେ,
ନାଲି ଟହଟହ ରବି ହସି । ...

ହାଲିଆ ନୋହ ମୋ ଭାଇ   ନାଲିଆ ସକାଳ ଉଠନ୍ତୁ ଚେଇଁ ହେ,
ଆଉ ନ ମାର ଅଳସ ହାଇ । ...

କଂଗ୍ରେସୀ, ସାମ୍ୟବାଦୀ   ଆସିଲେଣି ହାତେ ହାତକୁ ଛନ୍ଦି ହେ,
କମ୍ୟୁନିଷ୍ଟ ମୋ ଦେଶଦରଦୀ । ...

ମୋ ଦେଶ ସେବକଦଳ   ଚରଣେ କରୁଛି କୋଟି ଜୁହାର ହେ,
ସର୍ବେ ମିଳି କରିବେ ସମର । ...

ଫାଶ ଫାନ୍ଦ ବୁଢ଼ା ଗାନ୍ଧି   ବ୍ରିଟିଶ କେଶରୀ ପାରିଛି ବାନ୍ଧି ହେ,
ଛାଡ଼ ଭ୍ରମ ଏ ଫିକର ଫନ୍ଦ । ...

ଜହର ଖାଣ୍ଟି ଜହରୀ,   ଭ୍ରମ ଚୁଟି ମୁଠା ହାତରେ ଧରି ହେ,
ଦୂରେ ବସିଛି ଜବର କରି । ...

ଆଗରପଡ଼ାର ସିଂହ   ସ୍ଥମୁଙ୍କ ଲଗାମ ଧରିବ ଆଗ ହେ,
ମହତାବଙ୍କୁ ମାଲୁମ ବାଗ । ...

ରାଜମାଛରେ ଧ୍ୱସଣ   ଚଉଧୁରୀ ଧରି ମନରେ ଠାଣ ହେ,
ପେଷି ଦେବେଟି ମାରଣ ବାଣ । ...

ଯେବେ ଥରେ ରାଧାନାଥ   ରଥେ ଧରି ହାତେ ସମାଜ ବେତ ହେ,
ଭୁଲି ଆସିବେ ଏ ଗଡଜାତ । ...

ଝଳ ଯିବଟି ଆସନ,    ତଳ ପଡ଼ିବ ଏ ସତା ଶାସନ ହେ,
ବ୍ରିଟ ମଣିବ ପିନ୍ଧା ବସନ । …

ରଙ୍ଗପାଦ ଗୃଳ ଥିର    ଧୀରେ ଆସେ ଦୂରେ ଶାରଙ୍ଗଧାରୀ ହେ,
କିଏ ନିବ ତା ଯାଙ୍କୁ ଉଧୁରି । …

ପାଟଣାରେ ଯୁଧିଷ୍ଠିର    ଧର୍ମବାନା ଧରି ଏବେ ବାହାର ହେ,
ଚଳେ କୃଷକ ଦଳ ଛଆର । …

ତାଳଚେର ପ୍ରଜାବଳ    ପବିନ୍ଦ୍ର ପ୍ରଧାନ ପାଖରେ ଠୁଳ ହେ,
ଆଉ ନାହିଁଟି ତାଙ୍କୁ ଓଗାଳ । …

ଢେଙ୍କାନାଳ ଦଣ୍ଡପାଟ    ବୀର ବଇଷ୍ଣବ ମାରେ କୁହାଟ ହେ,
ସ୍ୱାମୁ ଦେଖ ଏବେ ନିଜ ବାଟ । …

ଥଣ୍ଡବ ଦେଖି ଧୁନଅଁ,    ଜଳାଙ୍କୁ ଅମେ ବହ୍ନିବ ନାଅଁ ହେ,
ଦେବୁଁ ଫୁଲକା ଗାଲରେ ଚଅଁ । …

ଛଡ଼ାଇ ରାଜମୁକୁଟ    ପଢ଼ାଇବୁଁ ପାଠ ଚଢ଼ାଇ ସ୍ୱାଟ ହେ,
ଆଉ ନୋହିବ ଦେଶେ ବିଭ୍ରାଟ । …

ପିମ୍ପୁଡ଼ି ନ ପାଉ ବାଟ    ଲଦିଥାଉ ପଛେ ଲୁହା କବାଟ ହେ,
ଆଣ୍ଡେ ପିଠା ଥାଉ କଣ୍ଟା ଗ୍ରୁଟ । …

ଭେଦ ପଥର ପାଚେରୀ    ଲଙ୍ଘି ରାଜ ଦରବାର କଚେରୀ ହେ,
କବି ଅଖି କାନ ଅସେ ଧରି । …

କବିତୁଣ୍ଡ ମୈଣ୍ଡାମୁଣ୍ଡ    ବଇଶାଖ ଝାଞ୍ଜିଠାରୁ ପ୍ରଚଣ୍ଡ ହେ,
ଦଣ୍ଡଭୟେ ନୁହେ ଲଣ୍ଡଭଣ୍ଡ । …

କଲମ ସମ୍ବଲ ଯାର    ଡରେ କି ସେ କେବେ କମାଣ ଗ୍ରୁର ହେ,
ସେ ତ ବିଦ୍ଧିବଳେ ବଳୀୟାର । …

ସ୍ୱାମୁ ଯେତେନୁଛ ମେଲଣି,    ଭେଟି କୋଟିଗୁଣେ ଦେବ ମୁଁ ପୁଣି ହେ,
ସାହା ହେଲେ ମା ସିଂହବାହିନୀ । …

———

ମୁଦ୍ରାକର, ମହମ୍ମଦ ଅବଦୁଲ ହାଦ, ଲକ୍ଷ୍ମୀନାରାୟଣ ପ୍ରେସ, କଟକ, ୧୯୪୭
ପ୍ରଥମ ମୁଦ୍ରଣ

